# ଇଟିରି ମିଟିରି















ଧୀର୍ ଚନ୍ଦ୍ରଚୂଡ଼

# ଖରା

ଖରା,
ମୁଣ୍ଡରେ ଖରା,
ମାଟିରେ ଖରା,
ଗାଈଗୋରୁ ଝୋଲାମରା;
ଝାଉଁଳି ପଡ଼ଇ ବଣମୂଳକ,
ନଈବାଲି ଝୁରୁଝୁରା । ॥୧ ॥

ଖରା,
ନିଆଁ ଖପରା,
ଦୁନିଆଁ ସାରା,
ମାଡ଼ିବସେ ବୁଢାଖରା;
ଜାଳି ପୋଡ଼ିଦିଏ ତତଲା ବାଆ,
ଚଡଭଡ ହୁଏ ଧରା ॥୨ ॥

ଖରା,
ଟାଣୁଆ ଖରା
ହାଣୁଆ ଖରା,
ଗ୍ଲୁଲ୍ଗୁଳି ଝାଞ୍ଜିଖରା;
ଖରା ମଉଳିଲେ ବଜାର ଭିଡ଼
ରାମଲୀଳା ରାତିସାରା ॥୩ ॥

ଖରା,
ଛାଇଆ ଖରା,
କାଉଁଳା ଖରା,
ଜାଲପକା ମାଛଧରା;
ଖରାବେଳ ସାରା ବାହାର ମନା,
ଶୋଇବାକୁ ଧରାପରା ॥୪ ॥

ଖରା,
ଖରା ନା ଫରା,
ନାହିଁ ପଚରା,
ପିଲାମନ ଆମ ପରା;
ଖରାଲାଗେ ଅବା ଖେଳପଡ଼ିଆ,
ଖେଳଜମେ ଦିନସାରା ॥୫ ॥



# ଚଉକୀ

ଚଉକି,
ମନ ମଉକି,
ଦୁଇହାତ ଗ୍ଯରିଗୋଡ଼;
ହେଇଟି ଅଇଲେ,
ମୁରବୀ ଲୋକ,
ଉଠିପଡ଼ ଧଡ଼ଧାଡ଼ ।।୧ ।।

ଚଉକି,
ସଭା ସଉକି,
ଚଉକି ମାଳକୁ ମାଳ;
ଚଉକି ଦେଖିଲେ,
ଭାଷଣ ମାରେ,
ଆମ ସାଇ ନିଧି ଭୋଳ ।।୨ ।।

ଚଉକି,
ଧଡ଼ ଧଉକି,
ପଢାବେଳ ହେଲେ ଡେରି;
ଡେରିଆ ପିଲାଟି,
ଚଉକି ବସେ,
ବାକୀ ସବୁ କିରିକିରି ।।୩ ।।

ଚଉକି,
ବଡ଼ ବଉକି,
ଚଉକି ପାଇଁକି ଅବା;
ମଣିଷ ଗୁଡ଼ାକ,
ଗୋଡ଼ିଆ ଗୋଡ଼ି,
ପଶୁ ପକ୍ଷୀ ଦେଖି କାବା ।।୪ ।।

ଭାଇରେ........
ଚଉକି ପକେଇ ବସ;
ଚଉକି ଫଉକି,
ନଥିଲେ ନାଇଁ,
ମନ ଖୋଲି ଟିକେ ହସ ।।ଶେଷ ।।



# ଇଟିରି ମିଟିରି



ଘାସ ଫୁଲ ହସେ ଇଟିରି ମିଟିରି,
ଧାନଫୁଲ ଝୁରୁଝୁରୁ;
ମୁଣ୍ଡିଆ ଉପରେ ଥଳ ପଦୁଅଁ
ବାରିଆଡେ ଛିଟ ସାରୁ ॥ ୧ ॥

ଖଟଗଦା କଡ଼େ ନାଉଲି ପାଉଲି
କଇଁଫୁଲ କିରିକିରି;
ବାଉଁଶ କଣିରେ ଟୁସି କଲରା,
ଶୀତ ଆସେ ସିରିସିରି ॥ ୨ ॥

ପକ୍କା ବାଟ କଳା ଠପର ଠାପର
ଗାଆଁ ବାଟ ଦଲ ଦଲ;
ସହର ଆଉଚି ଗାଆଁକୁ ବୁଲି
ଭରିଦବ ଡିପ ଖାଲ ॥ ୩ ॥

ବରଗଛ ଦିଶେ ଟଗଡ଼ ଟାଗଡ଼ା,
କେତେ ଗଛ କେତେ ଠାଇଁ,
ସିମଟ କାନ୍ଥରେ ହେଇଁଆ ଫାଟ
ସାପ ଟେର ସାଇଁ ସାଇଁ ॥ ୪ ॥

ମଉଜି ମନର ମାଉସୀ ଘର,
ମଟର ଗ୍ଲିଚି ମାଖନ ପୁର,
ଯିବ ଯଦି, ବେଗେ ଆସ;
ହେଇଟି ଯାଉଚି ରେଏଲ ଗାଡ଼ି
ତରବର ହେଇ ବସ । ॥ଶେଷ॥

# ନାଉନାଉ



ନାଉ ନାଉ.....,
ପେଟା ନାଉ,
ମୋଟା ନାଉ...
ନାଉ ହେଇକିରି ଘର ଯା....ଉ....
ନାଉ ଜାଉ କାଠ କାଠୁଆ...
ଆମ ପୁଅ ବଡ଼ ପାଠୁଆ...॥୧ ॥

ନାଉ ନାଉ....,
ବୁଢା ନାଉ....,
କଷି ନାଉ,
ନାଉ ହେଇ କୁନି ଝୁଲୁଥାଉ....
ନାଉ ନାଉ ଗୋଡ଼ ଗୋଗୋଚି....
ଆମ ଝିଅ ଦୋଳି ପହୁଁଚି.....॥୨ ॥

ନାଉ ନାଉ.....,
ଏଡ଼େ ନାଉ.....,
କେତେ ନାଉ...
ନାଉ ହେଇଗଲା ବୁଢା କାଉ...
ନାଉ ଭାଉ ପାଣି ଭଉଁରୀ...
କୁନାକୁନି ଫୁଲ ଚଉଁରୀ...॥୩ ॥

ନାଉ ନାଉ...
ଭାତ ଖାଉ....
ଡାଲି ଖାଉ....
ଭଜା ଖାଉ....
ଖାଇ ସାରି କରି ଘର ଯାଉ....॥ଶେଷ ॥

# ଜିନିଷପାତି

ଶାବଳ ଖୋଳୁଚି ଧୁସୁରୁ ଧୁସୁ,
ଫାଉଡ଼ା ହାବୁରୁ ହାବୁ;
ଗଇଁତି ଖୋଳଇ ଧୁମୁରୁଧୁମୁ,
ଖଣତି ଖୁବୁରୁ ଖୁବୁ ॥୧ ॥

କତୁରୀ କାଟୁଚି କଚର କଚ,
କୁରାଢୀ ହାଣୁଚି ହାଇଁ;
କୋରଣା କୋରୁଚି ଖଚର ଖଚ,
ପନିକି ସାଇଁକି ସାଇଁ ॥୨ ॥

ବଟାଲି କରୁଚି ଠକର ଠକ,
କରତ ସଅଁକ ସଅଁ;
ବାଗିସି ହାଣଇ ଧଚର ଧଚ,
ରନ୍ଦା ଖଚର ଖଅ ॥୩ ॥

ଛେନି ଗଳଇ ଥିପ୍ ଥିଇରି,
ଫୋଡ଼ଣି ସଟର ସଟ;
ଭଅଁର କାଟଇ ଖିଇର୍ ଖିରି
ଦାମ୍ପଣ ବୁଉଟ୍ଟ ରଟ ॥୪ ॥

ଏକଣା ଘରର ଗୋଟେ କଡ଼କୁ,
ଢାବଲ ପଡ଼ିଚି ମେଲା;
ଝେଲେଇ ପଡ଼ିଚି ଜିନିଷ ପାତି,
ଦୁଆରେ କଳଙ୍କି ତାଲା ॥୫ ॥

କୁନାକୁନି ଧରା ଧରି,
ବାଉଁଶ କଣିରେ,
ଡିଆଁରି ଧନୁ,
ଗଇଁଠା ସୁତୁଲି ଡୋରି ॥ଶେଷ ॥



# ବହିରେ ମୋର ଘର

ଖେଳିଲି ଯେତେ, ଖେଳଣା ମୁହିଁ,
କୁଆଡ଼େ ଗଲା ଭାଜି;
ଯେଉଁ କେତୁଟା, ଭାଙ୍ଗିଲା ନାହିଁ,
କୁଆଡ଼େ ଗଲା ହଜି ॥୧॥

ଛୁଆ ଦିନର, କେତେନା କେତେ,
ପୋଷାକ ଭଳି ଭଳି ;
ନାଲିଆ ଧଳା, ଗୋଲାପୀ କଳା,
ଯାଇଛି ଚିରିଚାରି ॥ ୨ ॥

ଖାଇଲି କେତେ, ମିଠେଇ ଖଜା,
ବରଫି ରସଗୋଲା;
ପନିପରିବା, ମାଉଁସ ମାଛ କୁଆଡ଼େ ସବୁ
ଗଲା ॥ ୩ ॥

ଜନମ କାଲୁ, ଗଲାଣି କେତେ,
ଦିନସ ରାତି ମାସ;
ଗଲାଣି କେତେ, ଦରବ ମାନ,
ନାହିଁ ତାଆର ଶେଷ ॥ ୪ ॥



ଯାଉଚି ସିନା, ଜିନିଷମାନ,
ବହିରୁ ଶିଖା କଥା;
ଭୁଲି ମୁଁ ନାହିଁ, ରହିଚି ମନେ
ମନରେ ପଡ଼ି ଲଥା ॥ ୫ ॥

ଭଳିକି ଭଳି, ବହିପତର,
ଟିକି ବେଳରୁ ମୋର;
ସାଇତି ଦେଖି ରଖିଚି ମୁହିଁ
ବହିରେ ମୋର ଘର ॥ ୬ ॥

# ସୁଲେଇ ନାନୀ

ସୁଲେଇ ନାନୀର ସାକୁଲା କଥା,
ଛଅଟା କଥାରେ ନଅଟା ଲଥା,
ଗୋଟାଏ ନଥାଏ ସତ;
କଥାରେ କଥାରେ ମୁହଁକୁ ଝାଡ଼େ,
ସତେକି ମାରୁଚି ବାତ ॥ ୧ ॥

ଚଗଲା ନନାର ଛିଗୁଲା ହସ,
ପାନ ଖାଉଥାଏ ମଅସ ମସ,
ପିକ ପଡୁଥାଏ ଝରି;
ଲୁଗାରେ ପଟାରେ ଖଇର କସ,
କଥାରେ କିଏ ତା ସରି ॥ ୨ ॥

ସୁଲେଇ ନାନୀକି ଚଗଲା ନନା,
ବାହାହେବେ ଖାଲି, ଉଡ଼ିଲା ବାନା,
ସାଇରେ ଉଠିଲା ଗୋଳ;
ଲାଇଟି ଲଗାରେ ପତର ପକା,
ଆଇଲା ପଙ୍ଗତ ବେଳ ॥ ୩ ॥

ନନା ନାନୀ ହେଲେ ବାହା;
ନାନୀ ସକେଇଲେ,
ନନାଟା ହସେ,
ନାନୀ ରଡ଼େ ଛାଡ଼ି ରାହା ॥ ଶେଷ ॥



# ଆମ ଓଡ଼ିଶା

ଆମ ଓଡ଼ିଶା ପେଟ ଆରିଷା,
ମୁହଁଟା ଖୁରୁମା ଖଜା;
ଗୋଡ଼ ଦିଇଟା ତାଳ ଗଇଁଠା,
ଆଙ୍ଗୁଠି ଛେନା ଗଜା ॥ ୧ ॥
ଆମ କାଳିଆ ରାହା ବାଳିଆ,
ନାଇଁରେ ଗୋଡ଼ କାନ;
ପେଟ ତାଆର ଗୋଟା ଅମାର
ପୋଡ଼ ପିଠାରେ ମନ ॥୨॥
ଆମରି ଭାଷା କେଡ଼େ ସରସା
ଭରିଚି ଗପ ଗୀତ;
ସାରଳା ଦାସ ମହାଭାରତ
ଓଡ଼ିଆ ଭାଗବତ ॥ ୩ ॥

ଆମରି ନାଚ କିଏ ଜାଣିଚ,
ସମଲ୍‌ପୁରୀ ଛଉ;
କେଳା ଧାଙ୍ଗ୍‌ଡ଼ା, ଚଇତି ଘୋଡ଼ା,
ଓଡ଼ିଶୀ ପୁଣି ଆଉ ॥ ୪ ॥

ଆମେ ଓଡ଼ିଆ,
ମନ ବିଡ଼ିଆ,
ସଭିଏଁ ବୁନୀତାନି;
ଯାହାକୁ ଦେଖୁ,
ନିଜର କରୁ
ଆପଣା ଲୋକମାନି ॥ ଶେଷ ॥



# ମେଘକରେ ନାଲୁ ନାଲୁ

ମେଘ କରେ ନାଲୁ ନାଲୁ,
ମୁଣ୍ଡିଆ ଉପରୁ ଗଡ଼ି ପଡ଼ିଲା;
ଗଙ୍ଗାରାମେ ହୋ.....
ଶଙ୍କର ପାଟିଆ ଭାଲୁ॥ ୧ ॥

ଭାଲୁକୁ ହେଇଚି ଜର,
ବୋଇତି କଖାରୁ ଆଣିଲ କର;
ଗଙ୍ଗାରାମେ ହୋ.....
ଛାଡ଼ିଯିବ ଭାଲୁ ଜର॥ ୨ ॥

ଭାଲୁ ଯାଇଥିଲା ଲଟା,
କାନରେ ଲାଗିଲା ଭଇଁଚ କଣ୍ଟା,
ଗଙ୍ଗାରାମେ ହୋ......
ଭାଲୁ ହେଲା ହଟହଟା॥ ୩ ॥

ଭାଲୁ ଲିପୁଥିଲା ଘର,
ଦିହରେ ଲାଗିଲା ମାଟି ଗୋବର;
ଗଙ୍ଗାରାମେ ହୋ.....
ଭାଲୁ ହେଲା ହରବର॥ ୪ ॥

ପାଣି ପଡେ ଫୁକୁଫୁକୁ,
ଲାଗିଚି ଅଦିନ ବରଷା ଝଡ଼;
ଗଙ୍ଗାରାମେ ହୋ.....
ଭାଲୁ ମନ ହାକୁ ହାକୁ॥ ୫ ॥

(ସଂଗୃହୀତ)



# ସବୁର୍ କର ଭାଇ



କାଗଜ ପଟେ ଧଇଲେ ମୁହିଁ
ମନମୋ ହାଇଁପାଇଁ;
କଅଣ ଗୋଟେ ଲେଖି ଦିଅନ୍ତି
ପଇଟୁ ଜମା ନାହିଁ ।
ଲେଖନ୍ତି ଗୋଟେ ଏମିତି ଗୀତ
ଗାଆନ୍ତେ ଶୁଆ ଶାରୀ;
ଏମିତି ଗପ ଦିଅନ୍ତି ଲେଖି
ଯାଆନ୍ତା ପଡ଼ି ହୁରି ॥ ୧ ॥

କେବେ କେମିତି ବୁଜିଲେ ଆଖି
ଭଲିକି ଭଲି କାଳି;
ଆଉଟି ହୁଏ ମନରେ ମୋର
ପାଏନା ଖୋଜି ତୂଳୀ ।
ଭାବଇ ମୁହିଁ ଦେବିରେ ଆଙ୍କି,
ଦେଖିବ ରହ ଦିନେ;
ଆଖି ତମର ହୋଇବ ଖୋସି,
ହସିବ ଛବି ତାନେ ॥ ୨ ॥

କାଗଜ ଧରି କଷିଲେ ଅଙ୍କ,
କଅଣ କେତେ ଭାବେ;
ଏମିତି ଗୋଟେ ନୂଆ ସୂତର
ଢୁକିବ ଯଦି କେବେ ।
ସବୁ ଗଣିତ ହେଇଲୁ ହବ
ସେଇ ଗୁମର ଦେଇ;
ନୂଆ ଗଣିତ କଷିବା ଡର
ରହିବ ମୋଟେ ନାହିଁ ॥ ୩ ॥

ସବୁର୍ କର ଭାଇ,
ଏମିତି ଗୋଟେ,
ଲେଖିବି ଦିନେ,
ପରତେ ଯିବ ନାହିଁ ॥ ଶେଷ ॥

# କଉ ମାଛ କର କର

ଛକଡ଼ି ମଉସା ଛବି ମାଉସୀ,
ଛୁଇଁ ତୋଳୁଥିଲେ ସଜନା କଷି,
ଛିଙ୍କି ଦେଲା ଛେଳିଛୁଆ;
ଛିଟିକି ପଡ଼ିଲା ଛୋଂପରା କୁଆ,
ଛାତରୁ ଛାଆଁକୁ ଛାଆଁ ॥ ୧ ॥
କୁଆର କାନରେ କହରା ପର,
କୁନି କୁନି କେତେ କଅଁଳ ଗାର,
କାଆ କାଆ କଲା କାଉ;
କୋଉଠି ଥିଲାଟି କାଣି ବିଲେଇ
କାନ୍ଦିଲା ମିଆଉଁ ମିଉ ॥ ୨ ॥
ବିଲେଇ ଦିଦିକୁ ବଗୁଲୀ ନାନୀ,
ବାରି ଚବକାରୁ ପୋବତା ଆଣି,
ବେସର କରିଲେ ଅଣ;
ବକତ ବେଳକୁ ବସିଲେ ଆସି
ବଗୁଲା ବାଇଶି ଜଣ ॥ ୩ ॥
କଉ ମାଛ କର କର;
ବତକ କହୁଚି, ବଘାରି ଦେଇ,
ପୋଇଟିଆନିଲ କର ॥ ଶେଷ ॥



# ଆସରେ ଆସ

ହେଇରେ ଶୀତ,
ମା... ଆରେ ନାତ,
ଆକାଶ ଚହଲି ଯାଉ
ଦେଏରେ ଝାଡ଼ି,
ପରିବା ଝୁଡ଼ି,
ବଣଭୋଜି କରି ଖାଉ ॥ ୧ ॥

ଏଇଟି ଖରା,
ମା.... ଆରେ ଚିରା,
ପଚେଇ ଦିଏରେ ଫଳ;
ଆମ୍ବ ସପୁରୀ,
ଜାମୁ ଖଜୁରୀ,
ନଇଁଯାଉ ଗଛଡ଼ାଳ ॥ ୨ ॥



ଆରେ ବରଷା,
ମାଆ...ରେ ଠେସା,
ଖରା ଖସିପଡୁ ଖାଲେ;
ବିଛେଇ ଦିଏରେ,
ମେଘ ଚାଦର,
ପାଣି ଖେଳୁଥାଉ ବିଲେ ॥ ୩ ॥

ଆସରେ ଆସ,
ବା...ର ମାସ,
ଆସ ଭାଇ ଦିନ ରାତି,
ଅଜାଡ଼ି ଦିଅ,
ଯିଏ ଯାହାର,
ଫଳଫୁଲ ଯେତେ ଜାଡ଼ି ॥ ୪ ॥

ହସେଇ ରସେଇ ଆସ
ଖାଇବ ଯଦି
ବରଫ ଖଜା,
ଆମରି ପାଖେ ବସ ॥ ଶେଷ ॥

# ଉଜଡ଼ା ବାଟକୁ ସଜାଡ଼ିଦିଅ

ଗୋସାଣୀ ଗାଆଁର ଗୋସେଇଁ ପୁଅ,
ପୋଥି ଥୋଇ ଦେଇ ଲଙ୍ଗଳ ଧଅ,
ଚଷିଦିଏ କ୍ଷେତବାଡ଼ି;
ବାଡ଼ିରେ ବିଲରେ ଫସଲ ହସୁ,
ବାହ୍ମୁଣୀ ଚଳଉ ଗାଡ଼ି ॥ ୧ ॥

କନ୍ଧୁରୀ ପଡ଼ାର ବାରିକ ବେଟା,
ମୁଠି ଛାଡ଼ି ଧର କଲମ ଗୋଟା,
ଲେଖିଦିଏ ଦୁଇପଦ;
କେନ୍ଦେରା ବଜେଇ ଗାଆରେ ଗୀତ,
ବାରିକାଣୀ ଧରୁ ଛନ୍ଦ ॥ ୨ ॥

ହେନ୍ତାଳ ପଲ୍ଲୀର ସାନ୍ତାଳ ପୁଅ,
ପାଠପଢା ସାରି ହାକିମ ହୁଅ,
ସମାଧାନ ହଉ ଆଜି;
ନିଶାପ ନିକିତି ତଉଲି ଧର,
ସାନ୍ତାଳୁଣୀ ସାଜୁ କାଜି ॥ ୩ ॥

କାଦୁଆ ସାଇର କେଉଟ ପିଲା,
ଜାଲ ଫିଙ୍ଗିଦେଇ ପସରା ମେଲା,
ବିଦେଶରୁ ମାଲ ଆଣି;
ବେଉଷା ବଢିଲେ ପଇସା ହବ,
କେଉଟୁଣୀ ନବ ଗଣି ॥ ୪ ॥

ଆଗେଇ ଦିଅରେ ବାଗେଇ ଦିଅ,
ଉଜଡ଼ା ବାଟକୁ ସଜାଡ଼ି ଦିଅ,
ଜାତି ପତି ସବୁ ଭୁଲି;
କରମ ବୋଇତ ସମୟ ସୁଏ,
ସଳଖେ ଯାଉରେ ମେଲି ॥ ୫ ॥



# ବହିପତର ପଢ଼

ଉଡ଼େ ପକ୍ଷୀ ଉଡ୍;
ଯୋଉଠି ପାଣି କାଚ ପରିକା,
ସେଇଠି ଯାଇ ବୁଡ୍ ॥ ୧ ॥

ବୁଡ଼େ ମାଛ ବୁଡ୍;
ପାଣି ଭିତରେ ପୋହଳା ସିତି
ଉପରେ ତା'ର ଚଢ୍ ॥ ୨ ॥

ଚଢ଼େ ମୂଷା ଚଢ୍;
ସଙ୍ଗା ଉପରେ ଶୁଖୁଆ ହାଣ୍ଡି,
ଭିତରୁ ଯାଇ କାଢ୍ ॥ ୩ ॥

କାଢ଼ ସାପ କାଢ୍,
ମାଟି ଭିତରେ ଶୋଇଚି ବେଙ୍ଗ
ବସାକୁ ତା'ର ତାଡ୍ ॥ ୪ ॥

ତାଡ଼ ଭାଲୁ ତାଡ୍;
ହୁଙ୍କା ମଝିରେ ଉଇର ଘର,
ଉଇ ଘରକୁ ମାଡ୍ ॥ ୫ ॥

ମାଡ଼ ନଈ ମାଡ୍;
ଏକଡ଼େ ବଢ଼ି ବିଛେଇ ଦେଇ
ଆରପଟକୁ ଗଡ୍ ॥ ୬ ॥

ଗଡ଼ ପିଲା ଗଡ୍;
ଜାଣିବୁ ଯଦି ଦୁନିଆ କଥା
ବହି ପତର ପଢ୍ ॥ ୭ ॥



# ଟାଆଁ ଟାଆଁ ଖରାରେ

ଦାଶ ବେନହୁର

ଟାଆଁ ଟାଆଁ ଖରାରେ,
ଦେଖ କିଏ ଆସିଲେ,
ଆସୁ ଆସୁ ଧସିଲେ,
ଧସୁ ଧସୁ ଧୁସ୍‌କିନା
ପବନରେ ପଶିଲେ ॥୧ ॥

ଝୁଉ ଝୁଉ ବରଷା,
ହେଇପରା ନାଚିଲା,
ନାଚୁ ନାଚୁ କାଟିଲା,
କାଟୁ କାଟୁ ଭୁଷ୍‌କିନା,
ମୃଷଳିଆ ଛେଚିଲା ॥୨ ॥

ଚୁପି ଚୁପି ଶରତେ,
ଅନାଏଇ ଫିଟିବ,
ଫିଟୁ ଫିଟୁ ଲୋଟିବ,
ଲୋଟୁ ଲୋଟୁ ଲଥ୍‌କିନା,
କେତେଫୁଲ ଫୁଟିବ ॥୩ ॥

ପିଇଁ ପିଇଁ ଶିଶିରେ,
କିଏ ଇଏ ଆସୁଚି,
ଆସୁ ଆସୁ ବସୁଚି,
ବସୁ ବସୁ ଫୁର୍‌କିନା
ଖରାବାଟେ ଖସୁଚି ॥ ୪ ॥

କିଣି କିଣି ହେମନ୍ତ,
ଏଇ ଲାଗୁ ଗଡ଼ିବ,
ଗଡୁ ଗଡୁ ଝାଡ଼ିବ,
ଝାଡୁ ଝାଡୁ ଥଡ୍‌କିନା
ମାଟି ଶେଯେ ପଡ଼ିବ ॥ ୫ ॥

ଶିରିଶିରି ବସନ୍ତ,
ଆଜି ସିନା ଆସନ୍ତ,
ଆସୁ ଆସୁ ଖେଳନ୍ତ,
ଖେଳୁ ଖେଳୁ ଥୁରିକିନା,
ଆମ ସାଥେ ମିଶନ୍ତ ॥ ୬ ॥



# ଜୟହିନ୍ଦ୍ ବୋଲ ଭାଇ

ନଳରୁ ପଡ଼ଇ ପାଣି;
ବାଉଁଶ ଲଟିରେ ବୁଲୁଚି ବାଆ
ଶୁଭୁଥାଏ କିଣି କିଣି ॥ ୧ ॥
ଖରାରେ ତରଳେ ପିଚୁ;
ଝାଞ୍ଜି ପବନ ଭଉଁରୀ କାଟେ
ବାଲି ହସେ ମୁରୁ ମୁରୁ ॥ ୨ ॥
ଖୁଣ୍ଟରେ ଜଳୁଚି ବତୀ;
ବରଷା ସୁଆଡି ଗଲାଣି ଥମି
ଝଡ଼ିପୋକ ଉଡ଼େ ମାତି ॥ ୩ ॥



କାକର ଖସଇ ଟୁପୁ;
ଛୋଟ ଚଦରକୁ ବଡ଼ ମଣିଷ
ଗୋଡ଼ହାତ ଖୁପୁଖୁପୁ ॥ ୪ ॥
ଚିମ୍‌ନି ଓକାଳେ ଧୂଆଁ;
କୁଡ଼ିଆ ଅନ୍ଧାରେ କଅଁଳ ପିଲା
ରଡ଼ି ଛାଡ଼େ କୁଆଁ କୁଆଁ ॥ ୫ ॥

ଡେଣାରୁ ଖସିଲା ପର;
ଡେରିରେ ଡମରୁ ଇସ୍କୁଲ ଆସେ
ହେଡ଼ମାଷ୍ଟ୍ରେ ଗର ଗର ॥ ୬ ॥
ଆସିଲା ପନ୍ଦର ଏଇ;
ଅଗଷ୍ଟ ମାସର ଅସଲ ଦିନ
ଜୟହିନ୍ଦ୍ ବୋଲ ଭାଇ ॥ ୭ ॥

# ଘୁଉଁ ମିମିମ୍

ଘୁଉଁ ମିମିମ୍ ଚଢି,
ଆଇଲା ହାଉଁ ବୁଢୀ ।
ଗାଇଲା ଧରି ଗିନି;
କୋଉଠି ଥିଲା ଅଝଟ ପିଲା,
ଥିଇରି ହେଲା ଢୁନୀ ॥ ୧ ॥

ଘୁଉଁ ମିମିମ୍ ଚଢି,
ଅଇଲା ମେଘ ଉଡ଼ି ।
ଅଜାଡ଼ି ଦେଲା କ୍ଷୀରି;
କୋଉଠି ଥିଲା କାନ୍ଦୁରା ପିଲା,
ହସିଲା କିରି କିରି ॥ ୨ ॥

ଘୁଉଁ ମିମିମ୍ ଚଢି,
ଘୁଡୁରୁ ଛାଡେ ରଡି ।
ପାଟିରୁ ଖସେ ଧୂଆଁ,
କୋଉଠି ଥିଲା କଅଁଳା ପିଲା,
କହିଲା କୁଆଁ କୁଆଁ ॥ ୩ ॥

ଘୁଉଁ ମିମିମ୍ ଚଢ଼ି,
ବାଗୁଲୁ ଆସେ ମାଡ଼ି ।
ହାତରେ ତା'ର ତୂରୀ,
ଅବୁଝା ପିଲା କୋଉଠି ଥିଲା,
ହେଇଲୁ ହେଲା ଥିରି ॥୪॥

ଘୁଉଁ ମିମିମ୍ ଚଢ଼ି,
ଯିବରେ କିଛୁ ଉଡ଼ି ।
ଦେଖିବ ଦୂର ଦେଶ;
ଆସିଲା ବେଳେ ଆଣିବ କିସ,
ଶୁଣିବ ଯଦି ବନ୍ଧ ॥୫ ॥



# ଟେଲିଫୋନ୍

ଟେଲିଫୋନ୍....ଟେଲିଫୋନ୍....
ଶୁଣମ ଟିକେ ଶୁଣ;
ଏତିକିଟିଏ ଦିଶୁଚ ସିନା
ଅଜବ୍ ତୁମ ଗୁଣ ॥୧॥

ବସିଚ ଏଠି, ଏକୁଟିଆଟା,
ପେଟରେ ତା ର ଯୋଡ଼ି;
କେମିତି କଥା ଉଡ଼େଇ ଆଣ,
କେଉଁ ମନ୍ତର ପଢ଼ି ॥ ୨ ॥

ଯିଏ ଯୋଉଠି ଥାଉ ପଛକେ,
ଯେତେ କୋଣରେ ଥାଉ,
ତୁମଠୁ ଥରେ ଶୁଣିଲେ କଥା
ଲାଗେନି ଦୂର ଆଉ ॥ ୩ ॥

ଦେଶ ବିଦେଶ ଆକାଶ ପାଣି
ସବୁ ଆଡ଼କୁ ପରା;
ଲାଗିଚି ତମ କିମିଆ ଡୋରି
ବରଷା କିବା ଖରା ॥୪ ॥

ତୁମକୁ ଆମ ଆଈ କହୁଚି
ଦୂରଶୁଣାଣି କଳ
କଥା ସାଥିରେ ଛବି ଦେଖିଲେ
କହିବ କିସ ଭାଳ ॥ ୫ ॥



ଥିବାବୁ ତୁମେ ଦୂର ବିଦେଶ
ଲାଗୁଚି ପାଖ ପରି,
ଏଇଠି ବସି ଏଇଠି ଶୁଭେ
ଲାଗିଚି ତୁମ ଡୋରି ॥୬॥

ଟେଲିଫୋନ୍....ଟେଲିଫୋନ୍...
ଆପଣା ତୁମେ ଆମ;
ବସିଚ ସିନା ଗୋଟିଏ ଥାନେ,
ଅଜବ୍ ତୁମ କାମ ॥୭॥

# ସିଠ ନା ସିଠ

ସିଠ ନା ସିଠ,
ମଦନ ସିଠ,
ସିଠ ଯାଇଥିଲା ଲଟାକୁ;
ଲଟାରେ ଥିଲା,
ଠେକୁଆ ପିଲା,
ଯାଇ କହିଦେଲା ହେଟାକୁ ॥ ୧ ।

ହେଟା ନା ହେଟା,
ଡିଙ୍କିଆ ହେଟା,
ଛୋଟା ଗୋଡ଼ ଟେକି ଧାଇଁଲା,
ମଉଳା ଖରା,
ମେଘ ଅସରା,
ଗୋଡ଼ ଖସିଯାଇ ପଇଲା ॥ ୨ ॥

ସିଠ ପଗ୍ରରେ କିଏରେ,
ହେଟା କହିଲା ମୁଉଁରେ ।
ମୁଉଁ ବୋଇଲେ କିଏରେ,
ତମ ଗୋସିବାପ ଯିଏରେ ।
ଆମ ଗୋସିବାପ କାଳିଆ,
ନିଶ ପଟାପଟା ଫାଳିଆ ।
ଫାଳିଆ ନିଶରେ ଅତର,
ସବୁ ନାତିମିଶି ସତର ॥୩॥

ସତର ଜଣକୁ ଅଠର କାତି,
ହେଟାକୁ ଦେଖିଲେ ମାରି ଧାଆଁନ୍ତି ॥ ୪ ॥
ହେଟା ଗୋଡ଼ ହାତ ପାଣି ପାଣିକା,
ପଡ଼ି ଉଠିଧାଏଁ ଗଡ଼ି ଗଡ଼ିକା ॥ ୫ ॥
ଯେତେ ମୁଁ ପଗ୍ରରେ କହିଲା ନାଇଁ,
ବାଡ଼ି ଧରିଥିଲା ସଜନା ଛୁଇଁ ॥୬॥





# ହଠାତ୍ ଦିନେ

ହଠାତ୍ ଦିନେ,
ହରଷ ମନେ,
ଅଗଲ କହିଲା ବଗଲ ଭାଇ,
ଚାଲିଯିବା ଆମେ ମହୁଲ ଖାଇ,
ମହୁଲ ଗଛରେ ପାହୁଲ ଥୋଇ,
ନାଚିବା ଆମେରେ ଥେଇକି ଥେଇ,
ମହୁଲ ଖସିବ ଝୁଲୁଝୁ ଝୁଲୁ,
ତଳକୁ ଓହ୍ଲାଇ କରିବା ଚଲୁ ॥ ୧ ॥

ଝଅଟ ଯାଇ,
ଝଟା ଆଡ଼େଇ,
ଖୋପରେ ଖୋପରେ ଥୋଇବା ପାଦ,
କରିବା ନାଇଁଟି ଚଢ଼ାରେ ବାଦ,
ଗୋଡ଼ଟି ଖସିଲେ ଭାଜିବ ହାଡ଼,
ଖଣ୍ଡିଆ ଦିହରେ ହୋଇବ ଗାଡ଼,
ଅଗଲ କହିଲା ବଗଲ ହଉ,
ଝୁଲାରେ ଖାଇବା ମହୁଲ ମହୁ ॥ ୨ ॥

ତହିଁ ଉତ୍ତାରେ,
ଦିହି ପହରେ,
ଅଗଲ ବଗଲ ଚଢ଼ିଲେ ଗଛ,
ପାଦକୁ ସଜାଡ଼ି ପଛକୁ ପଛ,
ଗଛରେ ବିରୁଡ଼ି ବସାକୁ ପିଠା,
ଭାବିଲା ଅଗଲ କରିଲା ମୁଠା,
ବିରୁଡ଼ି ଉଡ଼ିଲେ ଗଣର ଗଣ,
ନାକରେ କାନରେ ଭଅଣ ଭଣ ॥ ୩ ॥

ପଡ଼ିଲେ ତଳେ,
ଗଡ଼ିଲେ ମୂଳେ,
ଅଗଲ ରଡ଼ିଲା ବଗଲ ଭାଇ,
ମହୁଲ ପିଠାରେ କିଏସେ ଥାଇ,
ମାଇଲା ମତେରେ ପୋଡ଼ଇ ମୁହଁ,
ଭୋକିଲା ପେଟରେ ଜଳଇ ଦିହ,
ଅଗଲ ବଗଲ ଗଡ଼ିଆ ଗଡ଼ି,
ବିରୁଡ଼ି ତଥାପି ମାଇଲେ ତଡ଼ି ॥ ୪ ॥

